# ଯୁଗେ ଯୁଗେ ଯୋଗାଯୋଗ





ଡକ୍ଟର ଜଗନ୍ନାଥ ମହାନ୍ତି

# ଯୁଗେଯୁଗେ
# ଯୋଗାଯୋଗ

( ୨ୟ ଭାଗ )

ଲେଖକ :

ଡକ୍ଟର ଜଗନ୍ନାଥ ମହାନ୍ତି

ପ୍ରକାଶକ :

ସାହିତ୍ୟ ପ୍ରତିଷ୍ଠାନ

ଚଣ୍ଡିଛକ, କଟକ-୮

ପ୍ରକାଶକ :
ସାହିତ୍ୟ ପ୍ରତିଷ୍ଠାନ
ଚଣ୍ଡି ଛକ, କଟକ-୧

ପ୍ରଥମ ପ୍ରକାଶ : ୧୯୮୮

ମୁଦ୍ରଣ :
ଓଡ଼ିଶା ପ୍ରିଣ୍ଟିଂ ୱାର୍କସ୍
ମିଶନ୍ ରୋଡ୍, କଟକ-୧

ମୂଲ୍ୟ : ଚାରିଟଙ୍କା ପନ୍ଦର ପଇସା ମାତ୍ର

## ଏଥିରେ ଅଛି............



---

ଓ

# ପୁରା କାଳର ଲେଖାଲେଖି

ପ୍ରଥମେ ମନୁଷ୍ୟ ଗୁମ୍ଫାର କାନ୍ଥ ଓ ଛାତ ଦେହରେ ଛୋଟ ଛୋଟ ଚିତ୍ର ଆଙ୍କି ନିଜ ନିଜର ମନୋଭାବ ପ୍ରକାଶ କରୁଥିଲେ । କିନ୍ତୁ ଅକ୍ଷର ଲେଖିବା ପାଇଁ ଏହା ସୁବିଧା



ଜନକ ହେଲା ନାହିଁ । ଏବେ ଆମେରିକାର ଆଦିମ ଅଧିବାସୀ ଲୋହିତ ଭାରତୀୟମାନେ ମଇଁଷି ଚମଡ଼ା ବା ଗଛ ବକ୍‌କଲ ଉପରେ ଚିତ୍ର ଆଙ୍କନ୍ତି ।

ଆଗକାଳରେ ଲୋକମାନେ ଚମଡ଼ା, ଗଛପତ୍ର ବା ଖପରା ଉପରେ ଲେଖୁଥିଲେ । କିନ୍ତୁ ଏହି ସବୁ ପଦାର୍ଥ ଶୀଘ୍ର ନଷ୍ଟ ହୋଇ ଯାଉଥିଲା । ତେଣୁ ଲେଖା କିଛି ଦେଖି-ବାକୁ ମିଳେ ନାହିଁ । ହେଲେ ପାହାଡ଼ ଓ ପଥର ଉପରେ ଅଙ୍କା ଯାଇଥିବା ଲେଖା ଓ ଚିହ୍ନମାନ ଏ ପର୍ଯ୍ୟନ୍ତ ରହିଛି ।

ଦୁନିଆର ସବୁ ଜିନିଷ ଉପରେ ସମୟ ଓ ଜଳ-ବାୟୁର ଅତ୍ୟାଚାର ! ସବୁ ନଷ୍ଟ ହୋଇଯାଏ । ମଣିଷ କିନ୍ତୁ ତାର କାର୍ଯ୍ୟ ବଂଚାଇବାକୁ ଚେଷ୍ଟା କରେ । ସେଇ ଜିନିଷ ଗୁଡ଼ିକ ମଧ୍ୟରୁ ଗୋଟିଏ ମେସୋପୋଟାମିଆରେ ପୋଡ଼ା-ମାଟିର ଫଳକ । ମେସୋପୋଟାମିଆର ଲୋକମାନେ ଲେଖନୀ ପରି ଗୋଟିଏ ଉପକରଣ ବ୍ୟବହାର କରୁଥିଲେ । ତା ସାହାଯ୍ୟରେ କୀଳକ ଭଳି ରେଖାଚିହ୍ନମାନ କଞ୍ଚା-ମାଟିରେ ଆଙ୍କି ଦେଉଥିଲେ । ଏମିତି ଲେଖିବା ପରେ ସେଇ ଫଳକ ଗୁଡ଼ିକୁ ନିଆଁ ବା ଖରାରେ ପୋଡ଼ି ଦିଆଯାଉଥିଲା ।

ଏହିପରି ଲେଖାକୁ "କୀଳକ ଲିପି" କୁହାଯାଏ । ଏହି ଲେଖା କିଲା ପରି ଦେଖାଯାଉଥିବାରୁ ଏହାର ନାମକରଣ ଏପରି ହୋଇଛି । ମେସୋପୋଟାମିଆର ଦୁଇଟି ବଡ଼ ସହର ବେବିଲୋନିଆ ଓ ଆସିରିଆର । ତାର ଧ୍ୱଂସାବଶେଷରୁ ବିଭିନ୍ନ ଆକାର ପ୍ରକାରର ଏହିପରି ଫଳକର ଗଦା ମିଳି-ଥିଲା । ସେଗୁଡ଼ିକ ଭିତରେ ସରକାରୀ ଦସ୍ତାବିଜ, ଆଇନ

କାନୁନ୍, ଚୁକ୍ତିପତ୍ର, ସନ୍ଧିପତ୍ର ରହିଛି । ସେଥିରେ ବିଜ୍ଞାନ ଓ ସାହିତ୍ୟ ପରି ସ୍ଥାୟୀ ମୂଲ୍ୟ ଥିବା ଲେଖା ମଧ୍ୟ ଅଛି ।

ମାଟି ଫଳକଗୁଡ଼ିକ ଅତି ଓଜନିଆ । ନେବା ଆଣିବାକୁ ମଧ୍ୟ କଷ୍ଟକର । ସେଗୁଡ଼ିକ ସାଇତି ରଖିବା ପାଇଁ ଯଥେଷ୍ଟ ସ୍ଥାନ ଦରକାର । ତେଣୁ ପ୍ରାଚୀନ ମିଶରୀୟମାନେ "ପାପିରସ" ନାମକ ଗୋଟିଏ ନୂଆ ପଦାର୍ଥ ବ୍ୟବହାର କରିଥିଲେ ।

ଏକ ପ୍ରକାର ଘାସ 'ପାପିରସ' ନୀଳନଦୀ କୂଳରେ ପ୍ରଚୁର ପରିମାଣରେ ହେଉଥିଲା । ପାପିରସର ମଝି ଅଂଶକୁ ନାନା ଆକାରରେ କାଟି ଦିଆଯାଉଥିଲା । ପାଖକୁ ପାଖ ଥାକୁ ରଖି ପିଟା ଯାଉଥିଲା । ଫଳରେ ସେଗୁଡ଼ିକ ଚଟକା ହୋଇଥିଲା । ଖରାରେ ସେଗୁଡ଼ିକୁ ଶୁଖା ଯାଉଥିଲା । ସମୟ ସମୟରେ ଅଠା ମାରି ଶୁଖିଲା ପାପିରସକୁ ଯୋଡ଼ା ଯାଉଥିଲା । ଶୁଖିଲା ପାପିରସ କାଗଜ ପରି ଟାଣ ଓ ଚକ୍‌କଣ ହେଉଥିଲା । କାଗଜର ଇଂରେଜି ନାମ "ପେପର" ଏହି ପାପିରସରୁ ହିଁ ଆସିଛି ।

ମିଶରର ଲେଖକମାନେ ଏହି ପାପିରସ ଉପରେ ଅଠା, କଳା ଓ ପାଣି ମିଶାଇ କାଠି କଲମରେ ଲେଖୁଥିଲେ । ସେମାନଙ୍କର ପ୍ରଧାନ ଲିଖନ ଉପକରଣ ଥିଲା ଦୁଇଟି

କାଠିକଲମ, କଚ୍ଛ ନାଲ ଓ କଳା କାଳି, ଆଉ ଗୋଟିଏ ଛୋଟ ଜଳପାତ୍ର । ସେମାନଙ୍କର କାଠିକଲମ ବ୍ରସ ପରି ହୋଇଥିଲା ।



ସେମାନେ କାଠର ଗୋଟିଏ ମୁଣ୍ଡ ଛେଚିବାଇ ରୁଆ ବାହାର କରି ଦେଉଥିଲେ । ଏଇ ରୁଆ ବ୍ରସ ପରି କାମ

ଦେଉଥିଲା । ସବୁଠୁଁ ପୁରୁଣା ପାପିରସ ଲେଖା ଖ୍ରୀଷ୍ଟପୂର୍ବ ୩,୫୦୦ ସମୟର ଗୋଟିଏ କବର ଭିତରୁ ମିଳିଥିଲା । ମିଶର ଲେଖକମାନେ ଆଜିକାଲି ଖବର କାଗଜରେ ଛପା ହେଲାଭଳି ସ୍ତମ୍ଭାକାରରେ ଲେଖୁଥିଲେ ।

ଲମ୍ବ ଆକାରରେ ପାପିରସ ଲେଖାଗୁଡ଼ିକ ଗୁଡ଼େଇ ହୋଇ ରଖାଯାଉଥିଲା । ଏହାର ତଳ ଓ ଉପର ପଟେ ଦୁଇଟି କାଠ ପଟି ଅଠାମାରି ଲଗାଇ ଦିଆଯାଉଥିଲା । ଏହା ଲେଖାଗୁଡ଼ିକୁ ମଜବୁତ କରି ରଖିବାରେ ସାହାଯ୍ୟ କରୁଥିଲା ।

ପାଣି ଲାଗି ଏହା ଅନେକ ସମୟରେ ନଷ୍ଟ ହେଉଥିଲା । ମିଶରର ଶୁଷ୍କ ଜଳବାୟୁରେ କିନ୍ତୁ ପାପିରସ ଲେଖା ହଜାର ହଜାର ବର୍ଷ ଧରି ବଞ୍ଚି ରହିଥିଲା । ତେବେ ଅଧିକାଂଶ ପାପିରସ ନିରାପଦରେ ରଖାଯାଇଥିବା କବର ଭିତରୁ ମିଳିଥିଲା । ସେଗୁଡ଼ିକ ଏବେ ବହୁ ଦେଶର ଯାଦୁଘରେ ଅତି ଯତ୍ନର ସହିତ ରଖାଯାଇଛି ।

ପ୍ରାୟ ଖ୍ରୀଷ୍ଟପୂର୍ବ ୫୦୦ରେ ଚମଡ଼ା ଉପରେ ଲେଖା ଗଲା । ବାଛୁରୀ, ଛେଳି, ମେଣ୍ଢା ପ୍ରଭୃତି ପଶୁମାନଙ୍କର

ଚମଡ଼ାରୁ ଏହା ତିଆରି ହେଉଥିଲା । ଏହାର ବ୍ୟବହାର ସଂପର୍କରେ ଗୋଟିଏ ଗଳ୍ପ ଶୁଣାଯାଏ ।



ତାହା ହେଲା ପଶ୍ଚିମ ଏସିଆର ପେର୍ଗାମମ ବୋଲି ଗୋଟିଏ ରାଜ୍ୟ ଥିଲା । ସେହି ରାଜ୍ୟ ସହିତ ମିଶର ଦେଶର ଅପଡ଼ ହେଲା । ଏହା ହେଲା ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀର କଥା । ମିଶର ପେର୍ଗାମମ୍ ରାଜ୍ୟକୁ ଆଉ ପାପିରସ ପଠାଇଲା ନାହିଁ । ତେଣୁ ପେର୍ଗାମମ ରାଜ୍ୟର ଲୋକମାନେ ପାପିରସ ବଦଳରେ ନରମ ଚମଡ଼ାକୁ ବ୍ୟବହାର କଲେ ।

ଏହା ମଧ୍ୟ ପାପିରସଠାରୁ ଅଧିକ ମଜବୁତ । ତେଣୁ ଖୁବ ଲୋକପ୍ରିୟ ହେଲା । ପେର୍ଗାମମ ରାଜ୍ୟକୁ ଏହିପରି

ନରମ ଚମଡ଼ା ବହିର୍ଭିନ୍ନ ଉନ୍ନତ ଦେଶକୁ ପଠାଗଲା । ପେର୍ଗାମମ୍ ଦେଶର ନାଁ ଅନୁସାରେ ଏହି ନରମ ଚମଡ଼ାର ନାମ 'ପାର୍ଚମେଣ୍ଟ' ହେଲା ।

ପ୍ରଥମେ ପାର୍ଚମେଣ୍ଟ ପାପିରସ ପରି ଲୋକପ୍ରିୟ ହୋଇ ନଥିଲା । ଚତୁର୍ଥ ଶତାବ୍ଦୀ ବେଳକୁ ୟୁରୋପରେ ଏହାକୁ ଲେଖିବା ପାଇଁ ଅଧିକ ବ୍ୟବହାର କଲେ । ଏହାର ବ୍ୟବହାର ଫଳରେ ଲିଖନ ଶୈଳୀରେ ପରିବର୍ତ୍ତନ ହେଲା । ଏହା ଚିକ୍କଣ ହୋଇଥିବାରୁ ଲେଖିବା ପାଇଁ ନରମ ବ୍ରସ ଚଳିଲା ନାହିଁ । ତା ବଦଳରେ ଗୋଜିଆ କଲମର ବ୍ୟବହାର ହେଲା । ଏହିପରି କାଠି ବା ପର କଲମ ଆସିଲା ।

ଚୀନ୍ ଦେଶରେ ଶ୍ୟାଙ୍ଗ ଜାତିର ଲୋକମାନେ ଖୁବ ସଭ୍ୟ ଥିଲେ । ସେମାନେ ଖ୍ରୀଷ୍ଟପୂର୍ବ ଦୁଇ ହଜାର ବର୍ଷ ତଳେ ବାସ କରୁଥିଲେ । ରେସମ ଓ ସୂତା କନା ପ୍ରଭୃତି ଉପରେ ସେମାନେ କାଳିରେ ତୂଳି ବୁଡ଼ାଇ ଲେଖୁଥିଲେ । ଏହି କନାର ପୃଷ୍ଠାଗୁଡ଼ିକୁ ଏକାଠି ସିଲେଇ କରୁଥିଲେ । ଏହାର ତଳେ ଉପରେ ବାଉଁଶ ପାତ ଦେଇ ବନ୍ଧା କରାଯାଉଥିଲା ।

ଆଗେ ମିଶର ଓ ରୋମ୍‌ର ଲୋକମାନେ ମଧ୍ୟ ଲେଖିବା ପାଇଁ ସମୟ ସମୟରେ କନା ବ୍ୟବହାର

କରୁଥିଲେ । ରୋମର ଲୋକମାନେ ମଧ୍ୟ ମହମ ଉପରେ ଗୋଜିଆ ଲେଖଣୀ ସାହାଯ୍ୟରେ ଅକ୍ଷରମାନ ଖୋଳି ଲେଖୁଥିଲେ । ଲେଖଣୀର ଅନ୍ୟ ମୁଣ୍ଡଟି ଚଟକା ଥିଲା ଏବଂ ଲେଖିଲାବେଳେ କୌଣସି ଭୁଲ ହେଲେ ଏଥିରେ ମହମକୁ ଦାବଦେଇ ଲିଭାଇ ଦିଆଯାଉଥିଲା ।

ପୂର୍ବକାଳରୁ ଭାରତ, ବର୍ମା, ଶ୍ରୀଲଙ୍କା ପରି କେତେକ ଦେଶରେ ତାଳପତ୍ର ବ୍ୟବହୃତ ହେଉଥିଲା । ଏହି ତାଳପତ୍ର ଲେଖା ଏବେ ଭାରତର ବହୁ ଅଞ୍ଚଳରେ ଚଳୁଛି । ଭାରତର ବହୁ ପ୍ରାଚୀନ ଧର୍ମଶାସ୍ତ୍ର, କାବ୍ୟ କବିତା, କଳା ବିଜ୍ଞାନ ଏହି ତାଳପତ୍ରରେ ଲେଖାଯାଇଥିଲା । ଗାଁ ଗହଳରେ ଏବେ ବି ଏ ଗୁଡ଼ିକ ସାଇତା ହୋଇ ରହିଛି ।

ତାଳପତ୍ର ଗୁଡ଼ିକ ଶୁଖାଇ ସମାନ ଆକାରରେ କଟା ଯାଉଥିଲା । ଗୋଟିଏ ଲେଖଣୀ ସାହାଯ୍ୟରେ ତା ଉପରେ ଖୋଳି ଲେଖା ଯାଉଥିଲା । ସେଗୁଡ଼ିକର ମଝିରେ ଥିଲା ଗୋଟିଏ ଲେଖାଁ କଣା । ତା ମଧ୍ୟ ଦେଇ ସୂତାଟି ପୂରାଇ ଏକାଠି ବନ୍ଧା ଯାଉଥିଲା । ତାକୁ ପୋଥି କୁହାଯାଏ । ବଡ଼ ପୋଥିରେ ସମୟ ସମୟରେ ଦୁଇଟି ସୂତା ଲାଗୁଥିଲା । ପୋଥିର ତଳେ ଉପରେ କାଠ ବା ବାଉଁଶର ପଟା ଦିଆଯାଇ ମଜବୁତ କରାଯାଉଥିଲା ।

ଥରେ ଥରେ ଏହି ପଟା ମଲାଟ ଓ ତାଳପତ୍ର ପୃଷ୍ଠାରେ ଛବି ଅଙ୍କା ଯାଉଥିଲା । ସେହି ଛବିରେ ଥରେ ଥରେ ନାନା–

ରଙ୍ଗ ଲଗାଇ ସୁନ୍ଦର କରାଯାଉଥିଲା । ପୋଥିରେ ଲେଖିବା ପାଇଁ ଲୁହାର ଲେଖନୀ ବ୍ୟବହାର ହେଉଥିଲା । ତାର ଗୋଟିଏ ମୁଣ୍ଡ ଗୋଜିଆ ଓ ଅନ୍ୟ ମୁଣ୍ଡ ଧାରୁଆ ଥିଲା । ଗୋଜିଆ ମୁଣ୍ଡରେ ତାଳ ପତ୍ରକୁ କାଟି ସମାନ କରାଯାଉଥିଲା ।



ଲେଖିବା ପରେ ଦୀପକଳା ବା ଅନ୍ୟ ରଙ୍ଗର ଚୂନା ତାଳପତ୍ର ଉପରେ ଛୁଞ୍ଚ_ ଘଷି ଦିଆଯାଉଥିଲା । ଏହିପରି ଅକ୍ଷର ଗାଢ଼ କଳା ସଫା ଓ ସୁନ୍ଦର ଦିଶୁଥିଲା । ଗଛପତ୍ର ଓ କାଗଜରେ ଲେଖିବା ପାଇଁ ଯେଉଁ ଯେଉଁ କାଳି ବ୍ୟବହୃତ ହେଉଥିଲା, ତାହା ଦୀପ କଳା ବା କାଠକୋଇଲାରୁ ତିଆରି

କରାଯାଉଥିଲା । ଏଥିରେ କାଠି ବା ପରକଲମ ବୁଡ଼ାଇ ଲେଖା ଯାଉଥିଲା ।

ଉତ୍ତର ଭାରତରେ ତାଳପତ୍ର ବେଶୀ ମିଳୁ ନ ଥିଲା । ତେଣୁ ଭୂର୍ଜପତ୍ର ଓ କେତକ ଗଛର ବକ୍‌କଳକୁ ଲେଖିବା ପାଇଁ ବ୍ୟବହାର କରାଯାଉଥିଲା । ସମୟ ସମୟରେ ତୂଳା, ରେଶମ, କାଠ, ବାଉଁଶ ମଧ୍ୟ ଲେଖିବା ପାଇଁ ଖୋଜା ହେଉଥିଲା । ସବୁଠୁଁ ବେଶି ଦାମିକା ଲେଖା ପାଇଁ ତମ୍ବା ପଟା ବ୍ୟବହାର କରାଯାଉଥିଲା । ଭାରତୀୟ ରାଜା ଜମିଦାର ମାନେ ଏହା ଉପରେ ଖୋଳାଇ ସ୍ଥାୟୀ ଦଲିଲ୍, ଦସ୍ତାବଜ ଓ ଆଦେଶନାମା ତିଆରି କରୁଥିଲେ । ମାନପତ୍ର ଲେଖା-ଯାଇ ପ୍ରଜା ଓ ପଣ୍ଡିତମାନଙ୍କୁ ଦିଆଯାଉ ଥିଲା ।

ଏହାପରେ ନାନା ଦେଶରେ ସେଠାର ସୁବିଧାକୁ ଚାହିଁ ନାନା ପ୍ରକାର ଲେଖିବା ଜିନିଷର ବ୍ୟବହାର ହେଲା । ସେଇ ଅନୁସାରେ ଲେଖିବା ଭଙ୍ଗୀ ବଦଳିଲା । ଅକ୍ଷରରେ ଆକାର ମଧ୍ୟ ସେଇ ଅନୁସାରେ ହେଲା ।

ମେସୋପୋଟାମିଆର କୀଲକଲିପି, ଭାରତର ଗୋଲାକାର ଅକ୍ଷର, ଚୀନା ଓ ଜାପାନୀ ଭାଷାର ଚଉକାର ଲିପି ପ୍ରଭୃତି ଏହି ଦୃଷ୍ଟିରୁ ଅଲଗା ଅଲଗା ହୋଇଛି ।



# ହାତଲେଖା ହେଲା ଯୋଗାଯୋଗର ପାହାଚ

ପୂର୍ବକାଳରେ ଭାରତୀୟମାନେ ତାଳ ପତ୍ରରେ ଲେଖୁଥିଲେ । ଚନ୍‌ର ଶ୍ୟାଙ୍ଗ୍‌ମାନେ କନାରେ ଆଙ୍କୁଥିଲେ । ମିଶରର ଲୋକେ ପାପିରସ୍ ଘାସରେ ଲେଖୁଥିଲେ । ରୋମୀୟମାନେ ମହମ ଉପରେ ଲେଖୁଥିଲେ ।

ଶହ ଶହ ବର୍ଷ ଧରି ଏମିତି ଚାଲିଲା । ଏହି ସବୁ ହାତ ଲେଖା ହେଲା ଏହାର ପହିଲି ଅବସ୍ଥା । ଏବେ ମଧ୍ୟ ବିଜ୍ଞାନ ଏତେ ଆଗେଇଲେ ବି ହାତ ଲେଖା ହିଁ ପ୍ରତ୍ୟେକ କହିର ପ୍ରଥମ ରୂପ ।

ଏହି ପୁରୁଣା ହାତଲେଖା ମାନ ସତରେ ମଣିଷ ଜାତିର ମୂଲ୍ୟବାନ ସମ୍ପଦ । ମଣିଷ ସମାଜର ଉନ୍ନତି ପଥରେ ସେ ସବୁ ଗୋଟିଏ ଗୋଟିଏ ଚିହ୍ନଟ ପଥର । ବିଭିନ୍ନ

ଦେଶରେ ଧର୍ମ ସାହିତ୍ୟ, ବିଜ୍ଞାନ ଆଦି ବିଷୟରେ ଲେଖାମାନ ଲେଖାଯାଇଛି । ସେଥିପାଇଁ ସେମାନେ କଠିନ



ପରିଶ୍ରମ କରିଛନ୍ତି । ସେଥିରୁ ଅନେକ ନାନା ଦୁର୍ଘଟଣାରେ ଧ୍ୱଂସ ପାଇ କେତେକ ସବୁ ଅସୁବିଧା ଭିତରେ ବଞ୍ଚି ରହିଛି ।

ରୋମ, ଚୀନ୍, ମିଶର ଓ ଭାରତର ବହୁ ପୁସ୍ତକାଗାର ଅସଭ୍ୟ ଲୋକମାନଙ୍କ ହାତରେ ଧ୍ୱଂସ ପାଇଥିଲା । ସୁଖର କଥା କେତେକଙ୍କର ଧର୍ମଭାବ, ଜାତିପ୍ରେମ ଓ ଜ୍ଞାନପ୍ରୀତି ଯୋଗୁ ବହୁ ମୂଲ୍ୟବାନ ଲେଖା ଧ୍ୱଂସ ମୁଖରୁ ରକ୍ଷା ପାଇ ଥିଲା ।

କେତେ ବଡ଼ ଖାଇକ ଭାଙ୍ଗିଲା । ଖ୍ରୀଷ୍ଟ ପଞ୍ଚମ ଶତାବ୍ଦୀରେ ଅନେକ ପଣ୍ଡିତ ଗୀର୍ଜା, ମସଜିଦ ପ୍ରଭୃତିରେ

ଆଶ୍ରୟ ନେଲେ । ସେମାନଙ୍କ ମଧ୍ୟରୁ କେତେକ ହାତରେ ଲେଖୁଥିଲେ । କେତେକ ଉତ୍ତାର ବହୁ ସଂଖ୍ୟାରେ ପ୍ରକାଶ କରୁଥିଲେ । ଯେଉଁମାନେ ଏମିତି ଉତାରୁ ଥିଲେ, ସେମାନଙ୍କୁ ସ୍କ୍ରାଇବ୍ ବା କରଣୀ କୁହାଯାଉଥିଲା ।

ବାଲ୍ଟିକ ଦେଶ ଗୁଡ଼ିକରେ ସେତେବେଳେ ବାଇବେଲ ପ୍ରଭୃତି ଧର୍ମମୂଳକ ଲେଖାମାନ ଲେଖାଯାଉଥିଲା । ସେଇପରି ଆମ ଦେଶରେ କାଳିଦାସ, ଭବଭୂତି, ପାଣିନି, ଜୟଦେବ, ଉପେନ୍ଦ୍ର, କବିସୂର୍ଯ୍ୟ ଆଦି କବିଗଣ କାବ୍ୟ କବିତାମାନ ତାଳ ପତ୍ର ଉପରେ ଲେଖୁଥିଲେ । ୟୁରୋପର ଭର୍ଜିଲ, ହୋରେସ୍ ପ୍ଲାଟୋ ଆରିଷ୍ଟଟଲ, ୟୁକ୍ଲିଡ ପ୍ରମୁଖ ଲେଖକଗଣ କାଗଜ ବା ଚମଡ଼ା ଉପରେ ଲେଖୁଥିଲେ ।

କିନ୍ତୁ କରଣୀମାନଙ୍କୁ ଧନ୍ୟବାଦ ଦେବା କଥା ଯେ, ସେମାନେ ଭଲ ଭଲ ଲେଖାକୁ ଅତି ଧୈର୍ଯ୍ୟ ଓ ଯତ୍ନର ସହିତ ଉତାରି ଥିଲେ । ଏହା ଦ୍ୱାରା ସେ ଗୁଡ଼ିକ ସମାଜରେ ଆଦର ପାଇଛି । ସେ ଗୁଡ଼ିକ ବିଭିନ୍ନ ବିପଦ ଆପଦରୁ ବଂଚି ଯାଇଛି । ଅନେକ ମୂଳ ଲେଖା ଲୋପ ପାଇଛି । ହେଲେ ସେ ଗୁଡିକର ଅବିକଳ ନକଲ ଆମେ ପାଇ ପାରିଛୁ ।

ବହୁ ଭଲ ଲେଖା ଓ ଦାମିକା ଦଲିଲ ଦସ୍ତାବିଜ କେତେକ ପଣ୍ଡିତଙ୍କର କଠିନ ପରିଶ୍ରମ ଯୋଗୁ ରକ୍ଷା

ପାଇଛି । ଭୂଇଁତଳ ବା ଅଜଣା ସ୍ଥାନରୁ ଉଦ୍ଧାର କରାଯାଇଛି । ନଈବଢ଼ି ଅଉ ପୋଡ଼ା ଜଳାରୁ ସେ ସବୁ ରକ୍ଷା ପାଇଛି । ଇତିହାସରେ ବହୁ ଘଟଣା ଲେଖା ଯାଇଛି । ଅନେକ ଘଟଣା ଅଛପା ରହି ଯାଇଛି । ହାତଲେଖାମାନ ମନୁଷ୍ୟ ଯୋଗାଯୋଗର ଇତିହାସରେ ଗୋଟିଏ ଗୋଟିଏ ପାହାଚ । ମଣିଷର ଭଲମନ୍ଦ ଓ ଉନ୍ନତି ଅବନତିର ଗୋଟିଏ ଗୋଟିଏ ସୁନ୍ଦର ଚିତ୍ର ।



# ଏସିଆର ନାନା ଦେଶରେ
# ଛାପା କାର୍ଯ୍ୟ

ଛପାଇବାର ମୂଳକଥା ହେଲା, ଅକ୍ଷର ଉଚ୍ଚନୀଚ ଆସ୍ତରଣରେ କାଳି ଲଗାଇ ଏଥିରୁ କାଗଜ ବା ସେହିପରି ଅନ୍ୟ ପଦାର୍ଥ ଉପରେ ଅବିକଳ ଛାପ ଉଠାଇବା । ଏହାର ଆଦିମ ରୂପ ହେଲା ସିଲ ବା ମୋହର । ଏସିଆର ବିଭିନ୍ନ ଦେଶରୁ ବହୁ ପୁରାକାଳର ମୋହର ଦେଖିବାକୁ ମିଳେ । ସେହି ମୋହରରେ ଲେଖା ଓ ଚିତ୍ରମାନ ଖୋଳାଯାଇଥିଲା ।

ଚୀନରେ ପ୍ରାୟ ୫ମ ଶତାବ୍ଦୀରେ ମୋହର ସାହାଯ୍ୟରେ ଛପାକାମ ହେଉଥିଲା । ମଜାର କଥା ଯେ ଛପାଇବାକୁ ଚୀନ ଭାଷାରେ "ୟିନ୍" କୁହାଯାଏ, ଯାହାର ଅର୍ଥ ମଧ୍ୟ ମୋହର ।

ସମ୍ଭବତଃ ପ୍ରଥମେ ଦଲିଲ ଦସ୍ତାବିଜରେ ସରକାରୀ ଛାପ ଦେବା ପାଇଁ ମୋହରର ବ୍ୟବହାର ହେଉଥିଲା । ପରେ ବୁଦ୍ଧଙ୍କ ନୀତି ବାକ୍ୟ ବା ତାଙ୍କର ଛବିକୁ ଏହି

ମୋହରରେ ଛପାଗଲା । ଜାପାନରେ ପ୍ରାୟ ୭୭୦ ଖ୍ରୀଷ୍ଟାବ୍ଦରେ ଏହିପରି ଛପା ହୋଇଥିବା ଜିନିଷ ବ୍ରିଟିଶ ଯାଦୁଘରେ ଦେଖିବାକୁ ମିଳେ ।



ଏହିପରି ମୋହର ଛପାର ଅନୁଭୂତି ନେଇ ଚୀନାମାନେ ବ୍ଲକଛପା ଆରମ୍ଭ କରିଥିଲେ । ପୃଷ୍ଠା ଆକାରର କାଠ ଖଣ୍ଡରେ ବୌଦ୍ଧଜାତ, ଗୀତ, ଛବି ପ୍ରଭୃତି ଖୋଳା ଯାଉଥିଲା । ସେଥିରୁ ବହୁ ସଂଖ୍ୟାରେ ଛପା ଉଠା ଯାଉଥିଲା । ଏହିପରି କେତେକ ପୃଷ୍ଠା ହେଲା ପରେ ସେଗୁଡ଼ିକୁ ଏକାଠି କରି ବହି ବନ୍ଧା ଯାଉଥିଲା ।

ପୃଥିବୀର ସବୁଠାରୁ ପୁରୁଣା ବ୍ଲକ ଛପାର ଉଜ୍ଜ୍ୱଳ ଉଦାହରଣ ହେଲା "ହୀରକ ସୂତ୍ର" ବା ଡାଇମଣ୍ଡ ସୂତ୍ର ଏହି ନାମକରଣରୁ ଭାରତୀୟ ପ୍ରଭାବର ସୂଚନା ମିଳେ ।

ଏହା ପୃଥିବୀର ସବୁଠୁ ପୁରୁଣା ଧର୍ମ ଗ୍ରନ୍ଥ । ୮୬୮ ମସିହାରେ ଉହାଙ୍ଗ ଚହ୍ଧ ନାମକ ଜଣେ ଚୀନା ଲୋକଙ୍କ ଦ୍ୱାରା ଛପା ହୋଇଥିଲା । ପ୍ରଥମେ ୧୯୦୭ ମସିହାରେ ଏକ ଗୁମ୍ଫା ଭିତରୁ ଏହା ମିଳିଥିଲା ।















ଏହି "ହୀରକ ସୂତ୍ର" ସହିତ ୨୫,୦୦୦ରୁ ଅଧିକ ଏହିପରି ବହି ଓ ହାତ ଲେଖା ବାହାରି ଥିଲା । ଆଶ୍ଚର୍ଯ୍ୟର କଥା ଯେ ଏହା ସବୁ ଚୀନା, ସଂସ୍କୃତ, ତିବ୍ବତୀ, ପାର୍ସି

ପ୍ରଭୃତି ବହୁ ଭାଷାରେ ଲିଖିତ । ଏଗୁଡ଼ିକ ଏବେ ଭୁନ୍‌ହୁଆଙ୍ଗ ପୁସ୍ତକାଳୟରେ ରଖାଯାଇଛି । ହୀରକ ସୂତ୍ରରେ ଉଭୟ ଲେଖା ଓ ଚିତ୍ର ରହିଛି । ଏଥିରୁ ମଧ୍ୟ ଉନ୍ନତ ଛପା ଓ ବନ୍ଧେଇର ସୂଚନା ମିଳେ ।

ଚୀନର "ଶୁ" ରାଜ୍ୟ ୯ମ ଓ ୧୦ମ ଶତାବ୍ଦୀରେ ଖୁବ୍ ଜଣାଶୁଣା ଥିଲା । ଜଣେ ବ୍ୟକ୍ତିଙ୍କର ନିଷ୍ଠା ଓ ଚେଷ୍ଟା ଯୋଗୁଁ ସେଇ ରାଜ୍ୟ ଛପାକାର୍ଯ୍ୟ ଓ ପୁସ୍ତକ ପ୍ରକାଶନରେ ବହୁ ସଫଳତା ଦେଖା ଦେଇଥିଲା । ସେ ସମ୍ପର୍କରେ ଗୋଟିଏ ଗଳ୍ପ ଅଛି । ତାହା ହେଲା—

ୟୁ-ତ୍ସୁ-ଇ ନାମରେ ଗୋଟିଏ ଗରିବ ପିଲା ତାର ଜଣେ ସାଙ୍ଗ ଠାରୁ କେତେକ ବହି ମାଗି ପଢ଼ିବାକୁ ଇଚ୍ଛା କଲା । ମାତ୍ର ସେହି ସାଙ୍ଗ ବହି ଦେବାକୁ ମନା କରି ଦେବାରୁ ୟୁ ବଡ଼ ଦୁଃଖିତ ହେଲା । କିନ୍ତୁ ସେ ପଣ କଲା, "ମୁଁ ଦିନେ ସୁଯୋଗ ପାଇଲେ ବ୍ଲକ ସାହାଯ୍ୟରେ ବହୁ ସଂଖ୍ୟକ ବହି ଛପାଇ ପାରିବି । ସେତେବେଳେ ସବୁ ଲୋକ ବହି ପଢ଼ିବାର ସୁବିଧା ପାଇବେ ।"

ସତକୁ ସତ ସେ ପିଲାଟି ବଡ଼ ହୋଇ ରାଜ୍ୟର ଜଣେ ନେତା ହେଲା । ଶୁ ରାଜାଙ୍କର ପ୍ରଧାନ ମନ୍ତ୍ରୀ ହୋଇ ଯାଇ ତା ପିଲା ଦିନର ପଣ ରକ୍ଷା କରିଥିଲା । ସରକାରୀ ଉତ୍ସାହ ଓ

ସାହାଯ୍ୟ ପାଇ ଶୁ ରାଜ୍ୟରେ ବହୁ ସଂଖ୍ୟାରେ ବହିପତ୍ର ଛପା ହୋଇଥିଲା ।

୧୧ଶ ଶତାବ୍ଦୀର ମଧ୍ୟ ଭାଗରେ ପୀ ଶେଙ୍ଗ ନାମକ ଜଣେ ଚୀନା ଲୋକ ଛପାଇବା କାର୍ଯ୍ୟ ପାଇଁ ଏକ ପ୍ରକାର ଚଳନ୍ତି ଅକ୍ଷର ବ୍ୟବହାର କରୁଥିଲେ । ପ୍ରଥମେ ସେ ମାଟିରେ ଏହି ଚଳନ୍ତି ଅକ୍ଷର ଗୁଡ଼ିକ ତିଆରି କରଥିଲେ । ପରେ ସେ ଟିଣ, କାଠ, ବ୍ରୋଞ୍ଜ ପ୍ରଭୃତିରେ ଏହା ଗଢ଼ି-ଥିଲେ । ଏହା ଆଜି କାଲିର ଛାପା କାର୍ଯ୍ୟରେ ବ୍ୟବହୃତ ହେଉଥିବା ଚଳନ୍ତି ଅକ୍ଷର ପରି କହିଲେ ଚଳେ ।

କୋରିଆ ଓ ଜାପାନରେ ମଧ୍ୟ ଛାପା କାମ ପାଇଁ ଏହିପରି ଚଳନ୍ତି ଅକ୍ଷରର ପ୍ରଚଳନ ଥିଲା । ୧୩ଶ ଓ ୧୪ ଶତାବ୍ଦୀରେ କୋରିଆ ଥିଲା ଗୋଟିଏ ଉନ୍ନତ ଦେଶ । ରାଜାଙ୍କର ଉତ୍ସାହ ପାଇଁ ଏହାର କଳା ଓ ସାହିତ୍ୟ ଖୁବ୍ ଉନ୍ନତି କରିଥିଲା ।

ଏହି ଯେଉଁ ଚଳନ୍ତି ଅକ୍ଷରକୁ ନେଇ ଛପାକାର୍ଯ୍ୟ ହେଉଥିଲା । ସେ ଗୁଡ଼ିକ ଗୋଟିଏ ଭାବକୁ ନେଇ ତିଆରି ହେଉଥିଲା । ଚୀନ୍ ଭାଷାର ଅକ୍ଷର ଗୁଡ଼ିକ କିପରି ଗୋଟିଏ ନେଇ ଗଠିତ ହୋଇଛି ପୂର୍ବରୁ କୁହାଯାଇଛି । କୋରିଆ

ଓ ଚୀନ୍‌ର ମୁଦ୍ରାକରମାନେ ବହୁ କାଳଧରି ଏମିତି ଅକ୍ଷରକୁ ବ୍ୟବହାର କଲେ ।

ଚଳନ୍ତି ଅକ୍ଷରରେ ଛାପା ଜାପାନୀ ଭାଷାର ପ୍ରଥମ ବହି ୧୫୯୭ ମସିହାରେ ପ୍ରକାଶିତ ହେଲା । କିନ୍ତୁ କାଠ-ଖଣ୍ଡ ବା ବ୍ଲକ ପଦ୍ଧତିରେ ଚୀନ୍, ଜାପାନ, କୋରିଆ ପ୍ରଭୃତି ଦେଶରେ ଶସ୍ତା ଓ ସୁବିଧାରେ ଛାପା ହେଉଥିଲା । ତେଣୁ ଚଳନ୍ତି ଅକ୍ଷରକୁ ନେଇ କଳରେ ଛପାଇବାର ଗୌରବ ଜର୍ମାନୀର ଗୁଟେନବର୍ଗ ହିଁ ସାରା ମଣିଷ ଜାତି ପାଇଁ ଉନ୍ନତିର ନୂଆ ବାଟ ଖୋଲି ଦେଲେ ।



## ଛାପାକଳର କୁହୁକ ଖେଳ

ଜୋହାନ ଗୁଟେନ୍‌ବର୍ଗ ଜର୍ମାନୀ ଦେଶର ଜଣେ ଚତୁର ଲୋକ । ୧୪୪୦ ରୁ ୧୪୫୦ ମସିହା ମଧ୍ୟରେ ସେ



ଗୋଟିଏ ଛାପା କଲ ବାହାର କରିଥିଲେ ।

ସେ କେତେକ ସହକର୍ମୀଙ୍କ ସହିତ ଛାପା କାମରେ ନୂଆ ନୂଆ କଥା କଲେ । ଏଥିପାଇଁ ବହୁତ ଖର୍ଚ୍ଚ କଲେ । ତେଣୁ ସେ ଋଣରେ ବୁଡ଼ିଗଲେ ।

ପ୍ରଥମେ ସେ ତାଙ୍କର ନୂଆ ଛାପାକଳରେ ଗୋଟିଏ ବାଇବେଲ ଛାପିଥିଲେ । ଏହାଥିଲା ପ୍ରଥମ ଛାପା ବହି । ଏଇ କଳ ମଣିଷର ସଭ୍ୟତାକୁ ଆଗେଇ ନେଇଥିଲା ।

ଅବଶ୍ୟ ଗୁଟେନବର୍ଗଙ୍କ ପରେ ୟୁରୋପର ବହୁ ଲୋକ ଛାପାକଳର ଉନ୍ନତି କରିଥିଲେ । ଆଜି ଆମେ ଯେଉଁ ରୂପରେ ଛାପା କଳକୁ ଦେଖୁଛୁଁ, ତାହା ବହୁ ଲୋକଙ୍କ ପରିଶ୍ରମର ଫଳ । ଛାପାକଳ ପୁଣି ବହୁ ପ୍ରକାରର ।

ଲେଟରପ୍ରେସ ହେଉଛି ବହୁ ପୁରୁଣା ଛାପା କଳ । ଏହା ତିନି ପ୍ରକାରର । ଗୋଟିଏ ହେଲା ଛୋଟ । ନାଁ ତାର ପ୍ଲାଟେନ୍ । ଆଉ ଏକ ପ୍ରକାର ଛାପାକଳହେଲା ଫ୍ଲାଟ୍‌ବେଡ୍ । ରୋଟାରୀ ପ୍ରେସ୍ ହେଲା ଏକ ବଡ଼ ଛାପାକଳ । ଆଜିକାଲିର ଖବର କାଗଜ ମାନ ପ୍ରାୟ ଏହି ପ୍ରେସରେ ଛପାଯାଏ ।

ଲିଥୋଗ୍ରାଫି ଲେଟର ପ୍ରେସ୍ ଛାପା ପାଇଁ ଖୁବ ଲୋକପ୍ରିୟ । "ଲିଥୋ" ଅର୍ଥ ପଥର । ପଥରରେ

କୌଣସି ଚିତ୍ର ଅଙ୍କି ବା ଲେଖା ଲେଖି କରି ତା ଉପରେ ତେଲପରି ଚିକ୍‌କଣ ଜିନିଷ ମାଖି ଦିଆ ଯାଉଥିଲା । ପଥରର ଅନ୍ୟ ଅଂଶକୁ ପାଣିରେ ଓଦା କରି ଦିଆଯାଉଥିଲା । କାଗଜ ଜିନିଷ ଚିପି ଦେଲେ ପଥରରୁ ସେଇ ଛବିବା ଲେଖା ଉଠି ଆସୁଥିଲା ।

ତୁମେ ଜାଣିଥିବ, ତେଲ ଓ ପାଣି ଆଦୌ ମିଶେ ନାହିଁ । ଏଇ ନୀତି ଲିଇଥୋଗ୍ରାଫିର ମୂଳ କଥା । କାଳି ବୋଳା ଗୋଟିଏ ରୋଲର ଏହିପରି ଅଙ୍କା ଯାଇଥିବା ପଥର ଉପରେ ଗଡ଼େଇ ଦିଆଯାଏ । ତା ଉପରେ ଏକ କାଗଜ ଚିପି ଦିଆଯାଏ । ଏହି କାଗଜକୁ କାଢ଼ିଲା ମାତ୍ରେ ତା ଦେହରେ ଚିତ୍ର ଉଠିଯାଏ ।

ଏବେ ଯଦିଓ ପଥର ବଦଳରେ ଧାତବ ଚଦର ବ୍ୟବହାର କରା ଯାଉଛି । ସେଇ ପୁରୁଣା ନାମ ପଥର ଲେଖା ବା ଲିଇଥୋଗ୍ରାଫ ଚଳୁଛି । ଏହାକୁ ଅଫ୍‌ସେଟ୍ ଲିଇଥୋ କୁହାଯାଏ । କାରଣ ଲେଖା ବା ଚିତ୍ର ପ୍ରଥମେ ପ୍ଲେଟରୁ ଗୋଟିଏ ରବର ଚଦର ଉପରକୁ ଉଠିଯାଏ । ତାପରେ ରବର ଚଦର ଦେହରୁ କାଗଜ ଉପରକୁ ଉଠେ । ଏମିତି ଉଠା ଉଠି ଯୋଗୁ "ଅଫସେଟ୍" ନାମ ଦିଆ ଯାଇଛି ।

ଫଟୋ ଗ୍ରେଭିଅର ଆଉ ଏକ ପ୍ରକାର ଛପାରୀତି । ଏହି ଉପାୟରେ ଆଜି କାଲି ବହୁ ସଚିତ୍ର ପତ୍ର ପତ୍ରିକା

ଛପାଯାଏ । ଫଟୋ ଉଠାଇବା ନୀତି ଗୁଡ଼ିକ ଏଥିରେ ପ୍ରୟୋଗ କରାଯାଏ ।



ଯେଉଁ ରୀତିରେ ଲେଟର ପ୍ରେସ୍ ଛପାପାଇଁ ଛବି ତିଆରି କରାଯାଏ, ତାକୁ ବ୍ଲକ ପ୍ରୋସେସ୍ ଏନ୍‌ଗ୍ରେଭିଙ୍ଗ କୁହାଯାଏ । ଦୁଇ ପ୍ରକାରର ଚିତ୍ର ତିଆରି କରାଯାଏ । ଗୋଟିଏ ହେଲା ଲାଇନ୍ ଆଉ ଅନ୍ୟଟି ହାଫ୍‌ଟନ । ହାତ ଅଙ୍କା ଚିତ୍ରରୁ ବ୍ଲକ୍ ତିଆରି କରାଯାଇ ଲେଟର ପ୍ରେସରେ ଛପାଯାଏ ।

ଅନ୍ୟ ପକ୍ଷରେ ଫଟୋଚିତ୍ର ବା ବିଭିନ୍ନ ରଙ୍ଗର ଛାୟା ଥିବା ଅଙ୍କନରୁ ହାଫ୍‌ଟୋନ୍ ବ୍ଲକ୍ କରାଯାଏ । ଏଥିରେ ଚିତ୍ରଟି ଅସଂଖ୍ୟ ବିନ୍ଦୁରେ ପରିଣତ ହୋଇଥାଏ । ଚିତ୍ରଟିର କଳାସ୍ଥାନରେ ବଡ଼ ଓ ବହଳ ଏବଂ ସଫା ସ୍ଥାନରେ ସାନ ଓ ପତଳା ହୋଇ ବିନ୍ଦୁମାନ ଦେଖାଯାଏ ।

୧୮୩୫ ମସିହାରେ ଫକ୍ସ୍ ଟାଲବଟ୍ ଫଟୋଗ୍ରାଫି ବାହାର କରିଥିଲେ । ଚିତ୍ର ଗୁଡ଼ିକ ଛାପିବାରେ ଏହା ସାହାଯ୍ୟ କରେ । ଯେଉଁ ଛବିରୁ ବ୍ଲକ କରିବାକୁ ହୁଏ, ତାକୁ ଗୋଟିଏ ପଟାରେ ଲଗାଇ ଦିଆଯାଏ । ଖୁବ୍ ଆଲୁଅ ତା ଉପରେ ପକାଇ ବଡ଼ ପ୍ରୋସେସ୍ କ୍ୟାମେରାରେ ତାର ପ୍ରତିରୂପ ଉଠାଯାଏ ।

ପ୍ରଥମଂ ମୂଳ ଛବିରୁ ନେଗେଟିଭି ବା ଓଲଟା ଛବି କରାଯାଏ । ଗୋଟିଏ ଧାତବ ପ୍ଲେଟ ଉପରେ ସେହି ପ୍ରତିଛବିରୁ ପୁଣି ଛପାଯାଏ । ବିଭିନ୍ନ ରାସାୟନିକ ପ୍ରୟୋଗ ପରେ ଛବି ଗୁଡ଼ିକର ରେଖା ଉଚ୍ଚ ହୋଇ ରହିଯାଏ, ଆଉ ଅନ୍ୟ ଅଂଶତକ ଖାଇଯାଏ । ପରେ ଉଚ୍ଚ ଅଂଶତକରେ କାଳି ବୋଳି ତା ଉପରେ କାଗଜ ଚିପିଦେଲେ । ରେଖାତକ ଉଠିଯାଏ । ଏଥିରୁ ଆମେ ଛବି ପାଉ ।

ଭିନ୍ନଭିନ୍ନ ରଙ୍ଗ ପାଇଁ ଅଲଗା ଅଲଗା ବ୍ଲକ ତିଆରି କରାଯାଏ । ଗୋଟିଏ ପରେ ଗୋଟିଏ ବ୍ଲକ ଛପାଇ ଆମେ

ଦରକାରୀ ରଙ୍ଗସବୁ ପାଇଁ । ସାଧାରଣତଃ ପ୍ରଥମେ ହଳଦିଆ ପରେ ନାଲି, ତାପରେ ନୀଳ ଓ ଶେଷରେ କଳାରଙ୍ଗ ଛପା ଯାଏ । ଏମିତି ଆମେ ରଙ୍ଗିନ୍ ଛବି ପାଉଁ ।

ଛବିଗୁଡ଼ିକ ଲେଖାକୁ ସରସ ସୁନ୍ଦର କରେ । ବହିରେ ଲେଖା ଯାଇଥିବା ଘଟଣା ଓ ଦୃଶ୍ୟମାନ ଜୀବନ୍ତ ହୁଏ । ଆଜିକାଲି ଏକ ସମୟରେ ବହୁରଙ୍ଗର ଛବି ଓ ଲେଖା ଛପା ଯାଇ ପାରୁଛି । ସେଥିପାଇଁ ନାନା ପ୍ରକାର ଛପାକଳ ବାହାରିଲାଣି ।

ଆଜିର ଛପାକଳ ସତେ ଏକ ବିରାଟ ଆଶ୍ଚର୍ଯ୍ୟ । ଦେଖିବାକୁ ଏଇ କଳଗୁଡ଼ିକ ଯେମିତି ବଡ଼, କାମରେ ମଧ୍ୟ ସେମିତି ଚଞ୍ଚଳ । ଏହାର ଅଦ୍ଭୁତ କାମକୁ ଦେଖିଲେ କଳର କୁହୁକଖେଳ ପରି ଲାଗେ ।

ଛାପାକଳ ଆଜି ଲେଖକର ଲେଖା ଆଉ କଳାକାରର କଳାକୁ ସୁନ୍ଦର ଭାବରେ ଓ ବହୁ ସଂଖ୍ୟାରେ ଛପାଇ ପାରୁଛି । ତେଣୁ ଅନେକ ଲୋକ ପଢ଼ିବାକୁ ଓ ଦେଖିବାକୁ ପାଉଛନ୍ତି ।

ଆଜିକାଲି ଏଥିରେ ଅଳ୍ପ ଖର୍ଚ୍ଚ ହେଉଥିବାରୁ ଏହାର ମୂଲ୍ୟ ମଧ୍ୟ କମ୍ ହୁଏ । ତେଣୁ ଧନୀ ଗରିବ ସବୁ ଶ୍ରେଣୀର ଲୋକ ଏହା କିଣି ପାରନ୍ତି । ଛାପାକଳ ଯୋଗୁଁ କେତେ ସୁନ୍ଦର ବହିପତ୍ର କେତେ ଶୀଘ୍ର ଛପା ହୋଇ ପାରୁଛି । ସେ ସବୁ ମଣିଷର ଅତି ଉପକାରୀ ବନ୍ଧୁ ହୋଇ ପାରିଛି ।



# ସାରା ଦୁନିଆରେ ତାରଜାଲ
## ( ଟେଲିଗ୍ରାଫ )

ବହୁଦିନ ତଳର କଥା । ବୁଢ଼ାବାପା ରୋଗ ଶେଯରେ । ପୁଅଟି ତାଙ୍କର ଦୂର ଜାଗାରେ । ବାପା ଟାଣ ଥିଲେ । ହଠାତ୍ ଦେହ ବିଗିଡ଼ି ଯାଇଛି । ବୁଢ଼ା ପଥ୍ୟ ପାଚନ କରୁଛନ୍ତି । ହେଲେ, କିନ୍ତୁ ଭଲ ଲାଗୁନାହିଁ ।

ପୁଅଙ୍କ ପାଖକୁ ଖବର ପଠାଇଛି । ହେଲେ, ସେତେବେଳେ ଏକ କିଲୋମିଟରର ବାଟ ତ ଦଶ କିଲୋମିଟର । ଆଜିର ଦିନକର ବାଟତ ଦଶ ଦିନରେ ଯିବା ବି ସେତେବେଳେ କଷ୍ଟକର ଥିଲା । ବୁଢ଼ା କିନ୍ତୁ ପୁଅକୁ ଦେଖିବାକୁ ଭାରି ମନ କରୁଛନ୍ତି । ମନର କଥା କହିବାକୁ ଛଟପଟ ହେଉଛନ୍ତି ।

ଏମିତି ବୁଢ଼ାଙ୍କର ଶେଷବେଳ ପହଞ୍ଚିଲା । ପୁଅର ମୁହଁ ଟିକିଏ ଦେଖିବାକୁ ଭାରି ଇଚ୍ଛା । ହେଲେ, ତାହା ସମ୍ଭବ ହେଲା ନାହିଁ । ବୁଢ଼ା ଶେଷ ନିଶ୍ୱାସ ଛାଡ଼ିଲେ । ମନର କଥା ତାଙ୍କର ମନରେ ରହିଗଲା ।

ପୁଅ ଆସି ପହଞ୍ଚିଲେ । ସେତେବେଳକୁ ବାପ ମରି ଡନଦ୍ଦନ ହେଲ୍‌ଣି । ବାପ ପୁଅ ମୁହଁ ଟିକିଏ ଦେଖି ପାରିଲେ ନାହିଁ । ପୁଅ ମଧ୍ୟ ବାପାଙ୍କର ଶେଷ ଦର୍ଶନ ପାଇଲେ ନାହିଁ । ଦୁହିଁଙ୍କ ମନରେ କେତେ ଦୁଃଖ, କେତେ କଷ୍ଟ !

ଏବେ କିନ୍ତୁ କାହାର ଦେହ ଟିକିଏ ଖରାପ ଲାଗିଲେ ଶହ ଶହ କିଲୋମିଟର ଦୂରକୁ ଖବର ଚାଲିଯିବ । ବାପ ମୃତ୍ୟୁ ଶଯ୍ୟାରେ ପଡ଼ି ମଧ୍ୟ ତାର କରିଦେଲେ ଘଡ଼ିକ ଭିତରେ ପୁଅ ଚାଲି ଆସି ପାରିବ । ଶେଷଥର ପାଇଁ ବାପ ପୁଅର ଦେଖା ସାକ୍ଷାତ ଘଟିବା କେତେ ସୁନ୍ଦର କଥା !

ଆଜିକାଲି "ତାର" ବା ଟେଲିଗ୍ରାମ ଏଇ ଅସମ୍ଭବକୁ ସମ୍ଭବ କରି ପାରିଛି । ଦୁଃଖର ଘଟଣାକୁ ସୁଖର ଘଟଣାରେ ପରିଣତ କରିପାରିଛି । "ଟେଲି" ଓ "ଗ୍ରାଫ"—ଏଇ ଦୁଇଟି ଶବ୍ଦର ଅର୍ଥ "ଦୂର" ଓ "ଲେଖା" ।

ପୂର୍ବକାଳରେ ପାହାଡ଼ ଉପରେ ନିଆଁ ଜାଳି ଦୂରକୁ ଖବର ପଠାଯାଉଥିଲା । ନିଆଁ କମ୍ ବା ବେଶୀ ଜାଳି, କେତେବେଳେ କେଉଁ ପ୍ରକାରେ ଜାଳି ସେଥିରୁ ନାନା ଅର୍ଥ ବୁଝା ଯାଉଥିଲା । ଧୂଆଁ ମଧ୍ୟ ଏଇ କାମରେ ଲାଗୁଥିଲା ।

ବିଭିନ୍ନ ଆକାରରେ ଧୂଆଁକୁ ବାହାର କରି ନାନା ପ୍ରକାର ଖବର ପଠାଯାଉଥିଲା ।



କଥା ଅଛି । ଯେତେବେଳେ ୟୁରୋପରୁ ଗୋରା-ମାନେ ଆମେରିକାକୁ ଗଲେ, ସେଠାର ଆଦିମ ଅଧିବାସୀ ଲୋହିତ ଭାରତୀୟମାନେ ସେମାନଙ୍କ ଉପରେ ଚଢ଼ାଉ

କଲେ । ସେମାନେ ମେଳ କଲେ । ବଣଜଙ୍ଗଲ ତ ଭରପୁର । କପରି ସେମାନେ ଯୋଗାଯୋଗ କରିବେ ?

ସେମାନେ ଧୂଆଁ କରି ନିଜ ନିଜ ଭିତରେ ଖବର ଅନ୍ତର ଦିଆନିଆ କରୁଥିଲେ । ସେମାନେ ନିଜେ ସତର୍କ ରହୁଥିଲେ । ମଉକା ଦେଖି ଆଉ ଦଳବଳ ଧରି ସେମାନଙ୍କ ଉପରେ ଚଢ଼ାଉ କରୁଥିଲେ । ଏମିତି ଧୂଆଁ ସାହାଯ୍ୟରେ ୮୦ କିଲୋମିଟର ଦୂରକୁ ଖବର ପଠାଯାଉଥିଲା ।



ଆଫ୍ରିକାର ଅଧିବାସୀ ସେମିତି ଢୋଲକ ବଜାଇ ଖବର ପଠାଉଥିଲେ । ଆମ ଦେଶରେ ଗୁଙ୍ଗୁ ବାଇଦ

ବଜାଇ ରାଜାମାନେ ଲୋକମାନଙ୍କୁ ସେମାନଙ୍କ ହୁକୁମ ଜଣାଉଥିଲେ । ଗୋଟିଏ ଜାଗାରେ ବାଇଦ ବଜାଇ ଖବର



ଦେଲେ, ଅନ୍ୟ ଜାଗାରେ ଶୁଣି ସେମିତି ବଜାଉଥିଲେ । ଏମିତି ସାରା ଦେଶରେ ଖବରଟା ପହଞ୍ଚି ଯାଉଥିଲା ।

ସୂର୍ଯ୍ୟ କିରଣକୁ ଦର୍ପଣରେ ପକାଇ ସେମିତି ଖବର ଦିଆଯାଉଥିଲା । ଗ୍ରୀକ୍‌ମାନେ ନିଆଁହୁଳା ଜାଳି ଠାରରେ ଖବର ଦେଉଥିଲେ । ଉଭୟ ଯୁଦ୍ଧ ଓ ଶାନ୍ତି ସମୟରେ ଏହିପରି ଖବର ଅନ୍ତର ଦିଆନିଆ ଚାଲିଥିଲା ।

ଦୁଇଟି ପତାକାକୁ ନାନା ଅବସ୍ଥାରେ ଦେଖାଇ ଖବର ପଠାଯାଉଥିଲା । ରୋମ ସୈନ୍ୟମାନେ ପତାକା

ସାହାଯ୍ୟରେ ଖବର ଅନ୍ତର ବୁଝାବୁଝି କରୁଥିଲେ । ଏହି ବ୍ୟବସ୍ଥା ୟୁରୋପର ରାଜାମାନେ ଗ୍ରହଣ କରିଥିଲେ । ଠାରରେ ଏ ସବୁ ଖବର ଦିଆନିଆ ହେଉଥିଲା ।

ବିଲାତି ଜାହାଜଗୁଡ଼ିକ ପାଲକୁ ନାନା ପ୍ରକାରେ ଟାଣି ନିର୍ଦ୍ଦିଷ୍ଟ ଖବରମାନ ଜଣାଉଥିଲେ । ବନ୍ଧୁକ ଫୁଟାଇ ସତର୍କ କରାଉଥିଲେ ବା ସବୁର ଦୃଷ୍ଟି ଆକର୍ଷଣ କରୁଥିଲେ । ଡଚ ଲୋକମାନେ ପବନ କଳରେ ପାଲ ବାନ୍ଧି ନିଜ ପରିବାରର ଜନ୍ମ, ମୃତ୍ୟୁ, ବିବାହର ଆଦି ସଂପର୍କରେ ସୂଚନା ଦେଉଥିଲେ । ହଲାଣ୍ଡର ପବନ କଳ ଯୁଦ୍ଧ ସମୟରେ ଜର୍ମାନ ବିରୁଦ୍ଧରେ ଏମିତି ଠାର ଖବର ଦେବାରେ ସାହାଯ୍ୟ କରୁଥିଲେ ।

୧୭୮୯ ମସିହାରେ ଫରାସୀ ଆନ୍ଦୋଳନ ଚାଲିଲା । ଆନ୍ଦୋଳନର ଖବର ଚଉଦିଗରେ ପହଞ୍ଚାଇବା ପାଇଁ ଜରୁରୀ ଦରକାର ପଡ଼ିଲା । ସେତେବେଳେ ଆଜିର ରେଲଓ୍ୱେ ସିଗ୍‌ନାଲ ପରି ଏକ ପ୍ରକାର ଖବର ପଠାଇବା ବ୍ୟବସ୍ଥା ଫ୍ରାନ୍‌ସର ତିନି ଭାଇ ବାହାର କରିଥିଲେ ।

ଏହି ତିନିଭାଇଙ୍କ ଭିତରେ ବଡ଼ଭାଇ ହେଉଛନ୍ତି କ୍ଲଡ଼ ଚେପେ । ସେ ଗୋଟିଏ ବିଦ୍ୟାଳୟରେ ପାଠ

ପଢ଼ୁଥିଲେ । ତାଙ୍କର ଅନ୍ୟ ଦୁଇ ଭାଇ ଆଉ ଗୋଟିଏ ବିଦ୍ୟାଳୟରେ ପଢ଼ୁଥିଲେ । ଦୁଇ ବିଦ୍ୟାଳୟ ମଧ୍ୟରେ ଦୂରତା ଥିଲା ଦେଢ଼ କିଲୋମିଟର ।

କ୍ଲଡ଼ ତାଙ୍କ ଭାଇମାନଙ୍କୁ ଖବର ଦେବା ପାଇଁ ତାଙ୍କ ବିଦ୍ୟାଳୟଠାରେ ଗୋଟିଏ ଖୁଣ୍ଟି ପୋତିଥିଲେ । ସେଥିରେ ଦୁଇ ତିନୋଟି ବାହୁ ଲାଗିଥିଲା । ସେଇ ବାହୁ



ଗୁଡ଼ିକରେ ତାର ଲାଗିଥିଲା । ସେଇ ତାରକୁ ଟାଣି ବାହୁ-ଗୁଡ଼ିକୁ ବିଭିନ୍ନ ଅବସ୍ଥାରେ ରଖା ଯାଉଥିଲା ସେଇ ଅବସ୍ଥାରୁ ନିର୍ଦ୍ଦିଷ୍ଟ ଖବର ମିଳିପାରୁଥିଲା । ତିନି ଭାଇଙ୍କ ମଧ୍ୟରେ ଖବର-ଅନ୍ତର ଦିଆନିଆ ହେଉଥିଲା ।

ଫରାସୀ ଆନ୍ଦୋଳନ ବେଳେ ଏଇ ଯନ୍ତ୍ରକୁ ବ୍ୟବହାର କରାଯାଉଥିଲା । ଏହା ଦ୍ୱାରା ଶୀଘ୍ର ଖବର ଅନ୍ତର ଦିଆଯାଇ ପାରୁଥିଲା । ପରେ ଫରାସୀ ସରକାର ମଧ୍ୟ ଏଇ ଉପାୟକୁ ଗ୍ରହଣ କରିଥିଲେ । ପରେ ୟୁରୋପର ଭିନ୍ନ ଭିନ୍ନ ଦେଶରେ ଏହି ପଦ୍ଧତିର ବ୍ୟବହାର ହେଲା । ଏହାକୁ ସିମାଫୋର ପଦ୍ଧତି କୁହାଗଲା ।



ତାର ବା ଟେଲିଗ୍ରାଫ୍ ଆସିବା ଆଗରୁ ଆଉ ଏକ ପ୍ରକାରରେ ଦୂରକୁ ଖବର ଦେବାନେବା କରିବା ସମ୍ଭବ ହୋଇଥିଲା ।

ସେହି ପଦ୍ଧତିର ନାଁ ଥିଲା ହେଲିଓ ଗ୍ରାଫ । ଏଥିରେ ଗୋଟିଏ ଛୋଟ ଦର୍ପଣ ଥାଏ । ଖୁବ୍ କୌଶଳର ସହିତ ଏହା ଉପରକୁ ଆଲୁଅ ପକାଇ ଦିଆଯାଏ । ଶହ ଶହ କିଲୋମିଟର ଦୂରକୁ ଏହା ପ୍ରତିଫଳିତ ହୁଏ । ଏଥିରୁ ସାଙ୍କେତିକ ଅର୍ଥ ବୁଝାଯାଏ ।

ବାସ୍ତବରେ ପ୍ରଥମେ ଟେଲିଗ୍ରାଫ ବାହାର କାମରେ ଲାଗିଥିଲା । ଏହାକୁ ବାହାର କରିଥିଲେ ଇଂରେଜ



ବୈଜ୍ଞାନିକ ହୁଇଟ ଷ୍ଟୋନ୍ ଓ ତାଙ୍କର ସାଥୀ କୁକ୍ । ହୁଇଟ ଷ୍ଟୋନ୍ ଥିଲେ ଜଣେ ଅଧ୍ୟାପକ । ଦିନେ ସେ

ଶ୍ରେଣୀର ଛାତ୍ର ଛାତ୍ରୀମାନଙ୍କୁ ବିଜୁଳିର ପରୀକ୍ଷା ଦେଖାଉଥିଲେ । ସେଇ ସମୟରେ ତାଙ୍କ ମୁଣ୍ଡରେ ଟେଲିଗ୍ରାଫର ଚିନ୍ତା ପଶିଥିଲା । ସେ ବହୁ ପରୀକ୍ଷା ନିରୀକ୍ଷା କରି ଟେଲିଗ୍ରାଫ ବାହାର କରିବାରେ ସଫଳ ହେଲେ ।

କୁକ୍ ପାଞ୍ଚୋଟି ଚୁମ୍ବକ ଛୁଞ୍ଚି ଥିବା ଏକ ଟେଲିଗ୍ରାଫ ଯନ୍ତ୍ର ବାହାର କରିଥିଲେ । ହୁଇଟ ଷ୍ଟୋନ୍ ଏଥିରେ ତାଙ୍କୁ ସାହାଯ୍ୟ କରିଥିଲେ । ୧୮୪୦ ମସିହାରେ ପ୍ରଥମେ ଏଇ ଯନ୍ତ୍ର କାମରେ ଲାଗିଥିଲା । ତାର ଚାରିବର୍ଷ ପରେ ଗୋଟିଏ ହତ୍ୟା ଘଟଣା ଏଥିଯୋଗୁଁ ଧରା ପଡ଼ିଥିଲା । ଏହା ଯନ୍ତ୍ରଟିର ଲୋକପ୍ରିୟତା ବଢ଼ାଇ ଦେଇଥିଲା ।

ଲଣ୍ଡନର ଗୋଟିଏ ଲୋକ ସଲଟହିଲ ନାମକ ଏକ ଗାଁରେ ଜଣେ ସ୍ତ୍ରୀଲୋକକୁ ହତ୍ୟାକଲା । ତା ପରେ ସେ ପାଖ ଷ୍ଟେସନରେ ରେଲଗାଡ଼ି ଚଢ଼ି ନିଜ ଘରକୁ ଚାଲି ଆସିଥିଲା । ଏଇ ଖବର ସେଠାର ପୋଲିସ ନୂଆ ହୋଇ ବସିଥିବା ଟେଲିଫୋନ ଯନ୍ତ୍ରଟିରେ ଲଣ୍ଡନ ପୋଲିସଙ୍କୁ ଜଣାଇଦେଲେ । ଏଇ ଖବର ପାଇ ଲଣ୍ଡନ ପୋଲିସ ସଙ୍ଗେ ସଙ୍ଗେ ହତ୍ୟାକାରୀକୁ ଧରିଥିଲେ । ତା ପରେ ତାର ବିଚାର କରାଯାଇ ତାକୁ ଫାଶିଦଣ୍ଡ ମିଳିଥିଲା ।

ଏଇଘଟଣା ଚଉଦ୍ଦଗରେ ଚହଲ ପକାଇ ଦେଇଥିଲା । ଟେଲିଗ୍ରାଫ ତାରର ମହିମା ସବୁଦି ମୁହୂର୍ତ୍ତରେ ପ୍ରଚାର ହେଲା । ବାହାରର କେତେ ଗୁଡ଼ିଏ ରେଲ ଷ୍ଟେସନ ଓ ଡାକଘରେ ଏଇ ଯନ୍ତ୍ର ଖୁବ୍ ଭଲ କାମ କଲା ।



ସାମୁଏଲ ମୋର୍ସ ହୋଇ ଥିଲେ ଆଧୁନିକ ଟେଲିଗ୍ରାଫ ପଦ୍ଧତିର ପିତା । ସେ ପ୍ରସିଦ୍ଧ ମୋର୍ସ କୋଡ଼ ନାଁରେ ଏକ ସାଙ୍କେତିକ ଭାଷା ଏଥିପାଇଁ ବ୍ୟବହାର କରିଥିଲେ । ସବୁ ଇଂରେଜି ଅକ୍ଷରକୁ ସେ ଡଟ୍ ( . ) ଓ ଡ୍ୟାସ (—) ରୂପରେ ପ୍ରକାଶ କରିଥିଲେ । ଆମେରିକାରେ ସେ ଏହାର ବ୍ୟବହାର

ଦେଖାଇ ଥିଲେ । ସେଇ ମୋର୍ସ କୋଡ଼ରେ ଦୂର ଦୂରାନ୍ତକୁ ତାର ଖବର ପଠାଯାଇ ପାରିଲା ।



ତାପରେ ମୋର୍ସକୋଡ଼ "ଟରେ ଟକ୍କା" ଯନ୍ତ୍ରରେ ଲୋକପ୍ରିୟ ହେଲେ । ଏହି ଟେଲିଗ୍ରାଫ ଯନ୍ତ୍ରରେ ବହୁ ଉନ୍ନତି କରାଗଲା । ଆଜିକାଲି ସେଇ ସାଙ୍କେତିକ ଭାଷାରେ ପୃଥିବୀର ସବୁ ଦେଶରେ ତାର ବାର୍ତ୍ତାମାନ ପଠାଯାଉଛି । ଏମିତିକି ସମୁଦ୍ର ତଳେ ତାର ସବୁ ବିଛା ଯାଇ ହଜାର ହଜାର କିଲୋମିଟର ଦୂରକୁ ଖବର ଦିଆଯାଇ ପାରୁଛି ।

ଦୂରସ୍ଥାନ ମାନଙ୍କୁ ଶୀଘ୍ର ଖବର ଅନ୍ତର ପଠାଇବାରେ ଟେଲିଗ୍ରାଫ ଖୁବ୍ ସହାୟକ ହେଉଛି । ସାରା ଦୁନିଆଟା ଯେମିତି ଆଜି ତାର ଜାଲରେ ଛନ୍ଦି ହୋଇ ଯାଇଛି !

